# ଭୋଳି

ଦାଶରଥି [redacted]
ପଟ୍ଟନାୟକ

ପ୍ରକାଶକ :

**ଜଗନ୍ନାଥ ରଥ**

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

# ଭୋଲି

( ଶିଶୁ ନାଟିକା )

ନାଟ୍ୟକାର :

ଶ୍ରୀ ଦାଶରଥୀ ପଟ୍ଟନାୟକ

( O. E. S.—II )

ପ୍ରକାଶକ :

ଏକାଙ୍କିକା ପ୍ରକାଶନ

ବିନୋଦବିହାରୀ, କଟକ-୨

# ॥ ଭୋଳି ॥

ନାଟ୍ୟକାର :
ଶ୍ରୀ ଦାଶରଥୀ ପଟ୍ଟନାୟକ
( O. E. S.—II )

ପ୍ରକାଶକ :
ଏକାଙ୍କିକା ପ୍ରକାଶନ
ବିନୋଦ ବିହାରୀ, କଟକ-୨

ପ୍ରଥମ ସଂସ୍କରଣ—୧୯୮୯

ମୁଦ୍ରାକର :
ପ୍ରମିଳା ପ୍ରିଣ୍ଟର୍ସ
ଦେଉଳସାହି, କଟକ-୮

ମୂଲ୍ୟ ଟ ୪-୦୦ ମାତ୍ର

# ଭୋଳା

( ୧ )

[ ରାମଲାଲ ଜଣେ ମଧ୍ୟ ବୟସ୍କ (୪୦-୪୫) ବ୍ୟକ୍ତି—ବଡ଼ କୃଷକ । ତାଙ୍କର ତିନପୁଅ ଓ ଚାରିଝିଅ—ରାଧା, ମଙ୍ଗଳା, ଚମ୍ପା ଓ ସୁଲେଖା । ଶସ୍ୟ ଭଣ୍ଡାର ଭରପୂର—ଟଙ୍କା ପଇସା ଯଥେଷ୍ଟ, ଗାଁର ବେଶ୍ ସୁଖୀ ପରିବାର, ଗାଁର ସରବରାକାର (Revenue Officer) । ଦାଣ୍ଡପଟ ଓସାରିଆ ଚଉତରାରେ ବସି କେତେକ ଗ୍ରାମବାସୀଙ୍କ-ଠାରୁ ଖଜଣା ଆଦାୟ କରୁ ଥିଲେ । ତାଙ୍କ ପାଖରେ ବସିଥିଲେ ଗୁମାସ୍ତା, କିଛି ଦୂରକୁ ଗୁଡ଼ ପାହାଚ ଉପରେ ବସିଥିଲା ଗାଁ ଚଉକିଦାର । ଏହି ସମୟରେ ଘରଭିତରୁ ଏକ କୋଳାହଳ ଶୁଣାଗଲା । ରାମଲାଲ୍ ସେଥିରେ ବିଚଳିତ ହେଲେ ନାହିଁ । କହିଲେ—]

ରାମଲାଲ୍—ଓଃ ! ଏମାନେ ଟିକେ ଶାନ୍ତିରେ କାମ କରିବି ଦେବେନି । ଘର ଭିତରଟାରେ ସବୁବେଳେ ଏମିତି ଲାଗି ରହିଛି । ମୋର ଦେହ ସୁଆ ହୋଇଗଲାଣି । ଗୁଡ଼ ସେ କ'ଣ ହେଉଛି ଦେଖ । ପିଆଣ୍ଡୁକୁ ନଥା ଦେଲେ ଇଆଡ଼େ ହିସାବ କିତାବ ଭୁଲ୍ ହୋଇଯିବ । (ତଥାପି ଘର ଭିତରୁ ଏକ କାନ୍ଦଣା ଶବ୍ଦ ଭାସି ଆସୁଥିଲା । ଗୋଟି ପିଲାଙ୍କର ଓ ତା'

ସାଙ୍ଗକୁ ତାଙ୍କ ସ୍ତ୍ରୀଙ୍କର । ସେ ନଡ଼ଠି ଡାକ ପକାଉଛନ୍ତି (--ରାଧା, ମଙ୍ଗଳା, ଚମ୍ପା ! ଆରେ କଣ ହେଲା ? ଏ ଗୋଳମାଳ କାନ୍ଦଣା କାହିଁକି ! ଟିକିଏ ବନ୍ଦ କର ତ ଭଲା ।

(ସ୍ତ୍ରୀ ଦାଣ୍ଡଦରଜା ଅଧା ଆଉଜା କରି ଅଧାକାନ୍ଦଣା ଓ ଅଧାଚିତ୍କାର ସ୍ୱରରେ କହନ୍ତି)

ସ୍ତ୍ରୀ—ତୁମେ ତ ଭୋଳାନାଥ, ତୁମକୁ କଣ ଶୁଭୁନାହିଁ ?

ରାମଲାଲ୍—କହିଲେ ସିନା ଜାଣିବ ? ଏପରି ଚିହ୍ନା ହାଟରେ କ'ଣ ଶୁଭୁଛି ? (ଏହି ସମୟରେ ରାଧା ଦଶମାସର ଟିକିଝିଅଟିକୁ ହାତରେ ଧରି ବାହାରି ଆସିଲା)

ରାଧା—ବାପା ! ଏହି ଦେଖ ସୁଲେଖାକୁ । ଖଟ ଉପରୁ ତଳକୁ ପଡ଼ିଗଲା । କଣ ଯେ ହେଲା, ସେ ଆଉ କାନ୍ଦୁନାହିଁ କି ଆଖି ଫିଟାଉ ନାହିଁ । ବୋଉ ବ୍ୟସ୍ତ ହୋଇ ପଡ଼ିଲା । ଆମେ ସବୁ ଭାଇ ଭଉଣୀ ଦଉଡ଼ି ଆସିଲୁ । ଟିକି ଝିଅକୁ ଯେତେ ହଲଚଲ କଲୁ ସେ ଯେମିତି ସଉଛି । (କାନ୍ଦିବାକୁ ଆରମ୍ଭ କରନ୍ତି) ।

ରାମଲାଲ୍—ବେଶ୍, ଚାଲ ଘର ଭିତରକୁ ଚାଲ । (ଚଉକିଦାରକୁ ନିର୍ଦ୍ଦେଶ ଦେଲେ) ଟିକିଏ ଦୌଡ଼ିଗଲୁ ଧଡ଼ି ମିଶ୍ର ବୈଦ୍ୟଙ୍କୁ ଡାକି ଆଣିଲୁ । ଓଃ ! ସେ ତ ସେଇପଟେ ଦେଇଗଲେ । ହେ ବୋଧେ ଆଗରେ ଯାଇଛନ୍ତି । ଟିକିଏ ଦୌଡ଼ିଯାଆ ତ । (ଟଙ୍କାଗୁଡ଼ାକ ହାତରେ ଧରି, ଗୁମାସ୍ତାକୁ ବସିବାକୁ କହି ଘର ଭିତରକୁ ପ୍ରବେଶ କଲେ ।)
ଏ ରାଧାବୋଉ ! ଦେଖିଲ ଝିଅର ପ୍ରାଣ ଅଛି ତ !

ସ୍ତ୍ରୀ—ଦେଖୁନ, ସେ ସବୁ ଜୁଳୁଜୁଳୁ କରି ଚାହୁଁଛି । ପ୍ରାଣ ନାହିଁ କ'ଣ ? (ଏହି ସମୟରେ ବୈଦ୍ୟ ସେଠାରେ ପହଞ୍ଚିଗଲେ । ଝିଅକୁ ଦେଖି)

ବୈଦ୍ୟେ ଆପଣେ ଦେଖିଲେ, ଝିଅର କଅଣ ହେଲା । ସେ କାହିଁକି କାନ୍ଦୁନା । ସେ ଏତେ ଜୋରରେ ଘଡ଼ ଘଡ଼ ହୋଇ କାନ୍ଦେ, ଘର ସାରା କମ୍ପି ଯାଏ । ଖଟ ଉପରୁ ଗଡ଼ି ପଡ଼ିଲା । ମୁଁ କଅଁଳଗି କ'ଣ ତା' ଆଡ଼େ ନଜର ରଖିଛୁ । ମୁଁ ତ ଏଠି ବସି ପଢ଼ିବା କାଟୁଛି । ସେତ କଚ୍ଚଡ଼ ହୋଇ ପଡ଼ିଗଲା । ଆଗେ ତା ମୁଣ୍ଡ ତଳେ ଲାଗିଛି । ମୁଁ ଦେଖିଲା ବେଳକୁ ଆଉ ଅଛି କି ? ଝିଅଟା ଆଉ କାନ୍ଦୁନି ଆଖି ବନ୍ଦ କରି ପଡ଼ି ରହିଲା । ବେହୋସ୍ ହୋଇଗଲା କି କ'ଣ ! ଏବେ ଦେଖ ଆଖି ଫିଟାଇଲା ।

ବୈଦ୍ୟ—(ପିଲାଟିକୁ ଏପଟ ସେପଟ କଲେ, ହଲଚଲ୍ କଲେ । ହେଲେ ହାତ ଗୋଡ଼ ହଲାଇଲା ଏବଂ ଜୁଳୁଜୁଳୁ କରି ଚାହିଁଲା) ସେମିତି କିଛି ହୋଇନ । ତାକୁ ଟିକେ କୋଳରେ ଧରନ୍ତୁ । କ୍ଷୀର ଖାଉଛି କି ନା ଦେଖିବା । (ମା ପିଲାଟିକୁ କ୍ଷୀର ଦେଲେ । ସେ ମା'ଠୁ ଖାଇବାକୁ ଆରମ୍ଭ କଲା) ବେଶ୍, ବେଶ୍ ଏତେ ଉଚ୍ଚରୁ ପଡ଼ିଗଲା ନା, ଟିକଏ ତାବ୍ଦା ହୋଇ ଯାଇଛି । ତାକୁ ଟିକେ ପଙ୍ଖା କର ।

ମଙ୍ଗଳା—(ପଙ୍ଖା କରୁ କରୁ) ଆଜ୍ଞେ ! ସେ ଭଲ ହୋଇଯିବ ତ ? କାନ୍ଦିବ ତ ?

ବୈଦ୍ୟ—କିଛି ଚିନ୍ତା କରନ୍ତୁ ନ । ସେ ଭଲ ହୋଇଯିବ । ତା'ର କିଛି ହୋଇନ ।



[ ଶ୍ୟାମଲାଲଙ୍କ ଶୁଆ କୋଠରି, ସେ ଓ ତାଙ୍କ ସ୍ତ୍ରୀ ସେଠାରେ ବସିଛନ୍ତି । ଶ୍ୟାମଲାଲ ଖଟଉପରେ, ପରିଧେୟ ଧୋତି ଓ କାନ୍ଧରେ ଗାମୁଛା । ସ୍ତ୍ରୀ ବସିଛନ୍ତି ତଳେ, ପାଖରେ ପାନବଟା ଓ ଅନ୍ୟାନ୍ୟ ସରଞ୍ଜାମ । ଶ୍ୟାମଲାଲ ଦଳିଆଡ଼େ ବୁଲିବାକୁ ବାହାରିଛନ୍ତି, ସେଥିପାଇଁ ତାଙ୍କୁ ଆଠ ଖଣ୍ଡ ପାନ ଭର୍ତ୍ତି ଦେବାକୁ ହେବ । ସେ ପାନଡ଼ରି ଫାଳ ଫାଳ କରି ରଖିଲେ—ତଳେ କାନପାରି ତା' ଉପରେ ଚୂନଲଗା ପାନ ପାଖ ପାଖ ରଖିଲେ । ଗୁଆ କାଟିଲେ ଇତ୍ୟାଦି ଇତ୍ୟାଦି ]

ଶ୍ୟାମଲାଲ—(ଶ୍ୟାମଲାଲ କୁଣ୍ଡା ପିନ୍ଧୁ ପିନ୍ଧୁ ) ଆହା, ସୁଲେଖାର ମୋର କ'ଣ ହୋଇଗଲା । ଭଗବାନ ତାଙ୍କୁ କି ରୂପ ଦେଇ ନ ଥିଲେ । ଗୋରି ତକ୍ ତକ୍ ଦେହ । ଗୋଲ୍‌ଗାଲ୍ ହାତ ଗୋଡ଼ । ମୁହଁଟି ଯେମିତି ଶୁଦ୍ଧ ବଦନ । ଓଠ ଦୁଇଟି ନାଲି ଟୁକୁ ଟୁକୁ । ଗାଲ ଦୁଇଟି ଗୋଲାପୀ, ମୁଣ୍ଡର ବାଳ ରେଶମ—କୋମଳ ଆଉ ବଡ଼ ବଡ଼ କଳା ଆଖି । ଯେ କେହି ଚାହିଁଲେ ଆଖି ଫେରାଇ ନେଇ ପାରୁ ନ ଥିଲା ।

ସ୍ତ୍ରୀ—ହଁ ତା' ତାହା ଭାଗ୍ୟର ଦୋଷ । ଏତେ ରୂପ ସମ୍ଭାର ଦେଇ ମଧ୍ୟ ତାଙ୍କୁ ଭଗବାନ ମୂକ କରି ଦେଲା । ତୁମର ମନେଥିବ—ତାଙ୍କୁ ଯେତେବେଳେ ଦଶମାସ ସେ ଏହି ପଲଙ୍କ ତଳକୁ ଗଡ଼ିପଡ଼ିଲା । ଆଗେ

ମୁଣ୍ଡ, ତାପରେ ଦେହ । ସେ ବହୁ ଆଉ କଥା କହି ପାରିଲେନ ଦୁଇ ବର୍ଷପାଏ । ବୋକା ପାଲଟି ଗଲା । ସମସ୍ତେ ତାଙ୍କୁ ଡାକୁଛନ୍ତି ବୋକା ।



ରମଲାଲ୍—ତା' ପାହାହେଉ । ବାହାର ଚେହେରାଟା ତା'ର ବେଶ ଭଲ ଥିଲା—ହେଲେ କଅଣ ହେବ, ତାଙ୍କୁ ଯେତେବେଳେମାତ୍ର ଦୁଇବର୍ଷ, ବସନ୍ତ ଆକ୍ରମଣ କଲା । କି ଭୟଙ୍କର ! ଭଗବାନଙ୍କର ଅପାର କରୁଣା, ଆଜି ଦୁଇଟି ରକ୍ଷା ପାଇଗଲା । ସେ ବଞ୍ଚିଲା ସତ ମାତ୍ର ସାରା ଦେହ ଓ ମୁହଁରେ ବଡ଼ ବଡ଼ କଳା ଦାଗ ରହିଗଲା । ମୋର

ସୁନା'ର ପ୍ରତିମାକୁ ଫୁର୍‌ଫୁରି ସୀସା ରଙ୍ଗ କରିଦେଲା । ହଁ ଏବେ ତାକୁ କେତେବର୍ଷ ହେଲା ?

ସ୍ତ୍ରୀ—ତାକୁ ଏବେ ସାତବର୍ଷ ପୂରିଯିବ । ମୁଁ ଦେଖୁଛି ତା' ପ୍ରତି ଯେମିତି ସମସ୍ତଙ୍କର ଆଦର କମିଯାଉଛି । ଭାଇ ଭଉଣୀ ସମସ୍ତଙ୍କର । ଏମିତିକି ତୁମର ମଧ୍ୟ । ତା' ପାଇଁ ଗତ ପାଞ୍ଚବର୍ଷ ଭିତରେ ତମେ କେତେଖଣ୍ଡ ଜାମା ତିଆରି କରିଛ । ମୁଁ ବା କ'ଣ କରିବି, ଚମ୍ପା ତ ବଡ଼ ହୋଇ ଗଲାଣି । ତା'ର ଯେଉଁ କେତେଖଣ୍ଡ ପୁରୁଣା ଜାମା ଥିଲା ସେଥି କେତେ ଖଣ୍ଡ ଧୋଇ ଶୁଖାଇ ପିନ୍ଧୁଛି । ସବୁଦିନେ ବା କୋଉ ଧୂଆ ହେଉଛି । ମଇଳା କରି କରି, ତାକୁଇ ପିନ୍ଧୁଛି । ଚଡ଼ି ତା'ର ମାତ୍ର ଦୁଇଖଣ୍ଡ । ସେ ପୁଣି ମଇଳା, ଫଟା । ତାକୁ ପିନ୍ଧିଲେ ଯାହା, ଲଙ୍ଗଳା ହେଲେ ତାହା । ପାଟି ଫିଟୁନି ବୋଲି ସିନା । ହଉ ଭଗବାନଙ୍କ ଇଚ୍ଛା ।

ରାମଲାଲ୍—ହଁ ତା' ପିଲ୍ଟି ଆଉ ପସନ୍ଦ କରି କିଣାଯାଉନି । ଚମ୍ପାର ପୁରୁଣା ପୁରୁଣି ଦି'ଖଣ୍ଡ ପିନ୍ଧୁ, ସମସ୍ତ କଟାଉ । ରାଧା ତ ବାହା ହୋଇ ଗଲାଣି । ଶୁଣୁଥିଲି ତା'ର ଛୁଆ ପିଲା ହେବ । ବୋଲି ମଙ୍ଗଳାର ବିବାହ ତ ଠିକ୍ ହୋଇଚାଲା । ତା'ପରେ ଚମ୍ପା କଥା ଚିନ୍ତା କରିବା । ତା' ପାଇଁ ବର ଅଭାବ ହେବେନି । ରୂପ ଅଛି, ସ୍ୱାସ୍ଥ୍ୟ ଅଛି, ଆଉ କୋଣ୍ ଶଠଣ । କିନ୍ତୁ ସ୍ନେହ କଥା ଚିନ୍ତାକଲା ବେଳକୁ ମୋ ମୁଣ୍ଡ ଭିତରେ ସବୁ କିଛି ଗୋଳମାଳ ହୋଇଯାଉଛି । ନାହିଁ ରୂପ, ନାହିଁ ଗୁଣ, ଏକେତ ବୋକା । ଯାହା ଦିଅ ଖାଇ ଦେଉଛି । ଦେଖୁଛି. ତା' ପାଇଁ ଅଲଗା ବଡ଼ା ହେଉନାହିଁ । ଭାଇ ଭଉଣୀ କେହି ତାକୁ ସାଙ୍ଗରେ ଖୁଆଉ ନାହାନ୍ତି । ସେମାନଙ୍କର ଅଇଁଠାହିଁ ତା'ର ଖାଦ୍ୟ । କିନ୍ତୁ ତା'ର କେଉଁଥିରେ କିଛି ଆପତ୍ତି ନାହିଁ । ଆହା ବିଚ୍ଛା !

ସ୍ତ୍ରୀ—ହଁ, ତୁମେ ବୋଧେ ଜାଣିନ । ଏବେ ନିକଏ କଥା କହି ଶିଖିଲଣି । ଖନ ଖନ ହୋଇ କଥା ଠିକଏ କହୁଛି । ଖଗା ହୋଇଗଲା । ତା' ପାଇଁ କେତେ ତ ହଅଁକୁ ଜଣାଉଛି ।

ରାମଲାଲ୍—ଆଉ କ'ଣ କରିବ । ରାଧା ବାହା ଘରରେ ବହୁତ ଖର୍ଚ୍ଚ ହୋଇଗଲା । ରୂପ ଦେଖି ସିନା ବରଘର ନେଇଗଲେ । ତେବେ ମୋ ଶକ୍ତି ମୁତାବକ ଯାହା ଦେଲି । ତାଙ୍କର କିଛି ଦାବୀ ନଥିଲା । ଏବେ ତିନିପୁଅଙ୍କୁ ସହରକୁ ପଠାଇ ଦେଇଛି । ଦୁ'ଜଣ ସ୍କୁଲ୍ ହଷ୍ଟେଲରେ ଓ ବଡ଼ ପୁଅଟା କଲେଜ ହଷ୍ଟେଲରେ ରହି ପଢ଼ୁଛି, ମାସକୁ ମାସ ପାଞ୍ଚଶ ଟଙ୍କା ପଠାଉଛି । ଆଉ ଦୁଇମାସ ପରେ ମଙ୍ଗଳାର ବାହାଘର । ସେଥିପାଇଁ ତ ପ୍ରସ୍ତୁତ ହେବାକୁ ପଡ଼ିବ । (ଏହି ସମୟରେ ଚମ୍ପା ଆସି କହିଲା) ଆପଣଙ୍କୁ କିଏ ବାହାରେ ଡାକୁଛନ୍ତି । (ରାମଲାଲ କୁର୍ତ୍ତା ଖଣ୍ଡି ଦେହରେ ଗଳାଇ ବାହାରକୁ ଚାଲିଗଲେ ।)



[ ସ୍ଥାନ—ନୂତନ ନିର୍ମିତ ପ୍ରାଥମିକ ବିଦ୍ୟାଳୟ ଗୃହ । ଗ୍ରାମର କେତେଜଣ ବିଶିଷ୍ଟ ବ୍ୟକ୍ତି । ଆଜି ବାଳିକା ବିଦ୍ୟାଳୟ ଉନ୍ମୋଚନ କରାଯାଉଛି । ଆଞ୍ଚଳିକ ତହସିଲଦାର ସାହେବ ପ୍ରଧାନ ଅତିଥି ଭାବରେ ଉନ୍ମୋଚନ କରୁଛନ୍ତି । ସଭାପତି ଆସନ ଅଳଂକୃତ କରିଛନ୍ତି ଗ୍ରାମର ସରବରାକାର ଶ୍ରୀ ରାମଲାଲ୍ ।

୭।୮ ବର୍ଷର ଛୋଟ ଗୋଟିଏ ବାଳିକା ତହସିଲଦାର ସାହେବଙ୍କ କଣ୍ଠରେ ଫୁଲମାଳାଟିଏ ଲମ୍ବାଇ ଦେଲା । ଆଉ ଗୋଟିଏ ବାଳିକା ରୁପାର ନୂଆ କଇଁଚିଟିଏ ତହସିଲଦାରଙ୍କ ହାତକୁ ବଢ଼ାଇଦେଲା ଗୋଟିଏ ଥାଳିଆରୁ । ତହସିଲଦାର ସାହେବ ଦରଜା ସମ୍ମୁଖରେ ଟଣା ଯାଇଥିବା ନାଲ୍ ଫିତାକୁ କାଟି ନୂତନ ଗୃହର ଉନ୍ମୋଚନ କଲେ । ଗୃହ ମଧ୍ୟରେ କେତେକ ଚଉକି ଓ ଟେବୁଲ୍ ସଜ୍ଜିତ ହୋଇ ରଖାଯାଇଥିଲା । ବିଦ୍ୟାଳୟର ତିନିଜଣ ଶିକ୍ଷୟିତ୍ରୀ ଗୋଟିଏ ପଟରେ ଓ ଗ୍ରାମ୍ୟ ଭଦ୍ରଲୋକଗଣ ଅନ୍ୟପଟେ ଆସନ ଗ୍ରହଣ କଲେ । ସାମନାରେ ୧୦।୧୨ ଜଣ ଛୋଟ ଛୋଟ ଝିଅ ତଳେ ବସିଥିଲେ ।

ଡ: ସା: —ଆଜ ଅପରାହ୍ଣର ସଭାପତି ମହାଶୟ, ଗ୍ରାମବାସୀବୃନ୍ଦ, ବିଦ୍ୟାଳୟର ଶିକ୍ଷୟିତ୍ରୀଗଣ ଓ ଛାତ୍ରୀମାନେ ।



ଆଜ ମୋର ଏକ ସୌଭାଗ୍ୟ । ଏହି ପ୍ରାଥମିକ ବିଦ୍ୟାଳୟଟି ଆଜକୁ ତିନିବର୍ଷ ହେଲା ଚାଲୁଥିଲେ ମଧ୍ୟ, ବିଦ୍ୟାଳୟର ନିଜ ଗୃହ ନ ଥିଲା । ଯାହାହେଉ ଗ୍ରାମବାସୀଙ୍କ ଯତ୍ନ ଓ ଗ୍ରାମର ସରବରାକାର ଶ୍ରୀ ରାମଲାଲ୍ ବାବୁ ମହାଶୟଙ୍କ ପ୍ରଚେଷ୍ଟା ତଥା ସରକାରୀ ଅନୁଦାନରେ ଏହି ପଲ୍ଲୀ ପ୍ରାଥମିକ ବିଦ୍ୟାଳୟର ପକ୍କା ଗୃହ ନିର୍ମିତ ହୋଇଅଛି । ଚାରିଗୋଟି ଶ୍ରେଣୀ କୋଠରୀ ଓ ଗୋଟିଏ ଅଫିସ କୋଠରୀ । ଯଥାଶୀଘ୍ର ସରକାରଙ୍କ ତରଫରୁ ବିଦ୍ୟାଳୟ ପାଇଁ ଆସବାବପତ୍ର ଯୋଗାଇ ଦିଆଯିବ ।

ତେବେ ପ୍ରଧାନ କଥା ହେଲା—ବିଦ୍ୟାଳୟର ଛାତ୍ରୀ ସଂଖ୍ୟାବୃଦ୍ଧି । ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟରୁ କେତେକ ଛାତ୍ରୀଙ୍କୁ ନେଇ ବିଦ୍ୟାଳୟ ଚାଲିଥିଲେ ମଧ୍ୟ, ସର୍ବନିମ୍ନ ୮୦ ଜଣ ଛାତ୍ରୀ ଏ ବିଦ୍ୟାଳୟରେ ପଢ଼ିବା ଉଚିତ । ଯାହା ଜାଣିଲି, ସ୍କୁଲକୁ ଆସିବା ଝିଅଙ୍କ ସଂଖ୍ୟା ଅତି କମ୍ ।

ଏହି ଗ୍ରାମରେ ଅନେକ ଅଛନ୍ତି । ମାତ୍ର କେତେକ ଅନ୍ଧବିଶ୍ବାସ ଯୋଗୁଁ ଅଧିକ ଝିଅ ପାଠ ପଢ଼ିବାକୁ ଆସୁ ନାହାନ୍ତି ।

ମୁଁ ଗ୍ରାମବାସୀଙ୍କୁ ଅନୁରୋଧ କରିବି ସେମାନେ ସେମାନଙ୍କର କନ୍ୟାମାନଙ୍କୁ ଏ ବିଦ୍ୟାଳୟକୁ ପଠାନ୍ତୁ । ଶିକ୍ଷୟିତ୍ରୀମାନଙ୍କୁ ଅନୁରୋଧ କରିବି ସେମାନେ ଗାଁର ଘର ଘରକୁ ଯାଇ ଝିଅମାନଙ୍କର ମା'ମାନଙ୍କୁ ବୁଝାଇ ଛାତ୍ରୀ ସଂଗ୍ରହ କରନ୍ତୁ । ଆଜି ଏ ବିଷୟରେ ଅଗ୍ରଣୀ ହୁଅନ୍ତୁ ଶ୍ରୀ ରମଲାଲ୍ ବାବୁ । ସେ ଏ ଗାଁର ସରବରାକାର ତଥା ସରକାରଙ୍କର ପ୍ରତିନିଧି । ତେଣୁ ସେ ତାଙ୍କର ଝିଅମାନଙ୍କୁ ଏ ବିଦ୍ୟାଳୟକୁ ପଠାନ୍ତୁ ଏବଂ ଅନ୍ୟ ମାନଙ୍କର ଆଖି ଖୋଲି ଦିଅନ୍ତୁ ।

ମୁଁ ଆପଣମାନଙ୍କର ଆଉ ଅଧିକ ସମୟ ନେଉନାହିଁ । ଧନ୍ୟବାଦ ।

ରମଲାଲ୍—ତହସିଲଦାର ସାହେବ ଯାହା କହିଲେ ଅବଶ୍ୟ ସେ ସବୁ ଆମ୍ଭମାନଙ୍କର ତଥା ଏ ଗ୍ରାମର ମଙ୍ଗଳ ପାଇଁ । ମୁଁ କଥା ଦେଉଛି, ମୋର ଝିଅମାନଙ୍କୁ ପାଠ ପଢ଼ିବାକୁ ଛାଡ଼ିବି । ମୁଁ ମୋ ତରଫରୁ, ଗ୍ରାମବାସୀଙ୍କ ତରଫରୁ ତଥା ବିଦ୍ୟାଳୟର ଶିକ୍ଷୟିତ୍ରୀ ଓ ଶିଶୁ ଛାତ୍ରୀ-ମାନଙ୍କ ତରଫରୁ ଆଜି ଶୁଭ ଅବସରର ପ୍ରଧାନ ଅତିଥି ଶ୍ରୀଯୁକ୍ତ ତହସିଲଦାର ସାହେବଙ୍କୁ ଧନ୍ୟବାଦ ପ୍ରଦାନ କରୁଛି । ସଭାଭଙ୍ଗ ହେଲା । ଜୟହିନ୍ଦ୍ ।

[ ଏକ ବିଦାୟ ଗୀତିକା ]

(ଛୋଟ ଛୋଟ ବାଳିକାମାନଙ୍କ କଣ୍ଠରେ)

ପଶ୍ଚିମ ଆକାଶ ହେଲାଣି ଲୋହିତ
ଲାଲ୍ ଏ କିରଣ ହେଲା ବିଚ୍ଛୁରିତ,
ମାଗୁଛୁ ମେଲାଣି ଆମେ

ଅତିଥି ପ୍ରବର ଦୟା କରି ଆଜି
ଶିଶୁ ବିଦ୍ୟାଳୟେ ଦୃଷ୍ଟି ରଖିଥାଅ
ପ୍ରଶଂସନ୍ତୁ ପୁରଜନେ । ୧ ।



ସନ୍ଧ୍ୟା ଆଗମନ ଦେଲଣି ସୂଚନା
ଝଡରେ ସୁଗନ୍ଧ ସୁଗନ୍ଧ ସେ ଦେନା
ସେହିପରି ମନ ଛବ,

ଏହି ଅନୁଷ୍ଠାନ ଉନ୍ନତିର ପଥେ
ନବେଗରେ ବଢ଼ୁ ସବୁ ଜ୍ଞାନ ସାଥେ,
ସତ୍ୟ ପଥେ ସମ୍ଭବ । ୨ ।

ଜ୍ଞାନ ପୀଠ ପେଣୁ ମାଆ ସରସ୍ୱତୀ
ଦିଅନ୍ତୁ ଆଶୀଷ ପ୍ରଜ୍ଞା ପ୍ରଜାପତି
ଅଳି ଏବ୍ଧ ଶ୍ରୀଚରଣେ
ସରଳା ବାଳିକାଗଣ କରୁଛୁ ପ୍ରଣତି
ବିଦାୟର ବେଳା ପ୍ରାୟ ଆଣେ ଅତି
ଏ ସନ୍ଧ୍ୟାରେ ଆମ ପ୍ରାଣେ । ୩ ।



[ ରାମଲାଲ୍‌ଙ୍କ ଶୟନାଗାର । ଖୁବ ସାମାନ୍ୟ ବଡ଼ି ଯାଇଛି । ରାମଲାଲ୍ ଓ ତାଙ୍କ ସ୍ତ୍ରୀ ଏକାନ୍ତ କଥାବାର୍ତ୍ତାରେ ବ୍ୟସ୍ତ । ]

ସ୍ତ୍ରୀ—କ'ଣ ହେଲା, ତୁମେ ସହରୁ ଫେରିବା ପରେ ଏତେ ଚିନ୍ତିତ ଦେଖାଯାଉଛ କାହିଁକି ? ତହସିଲଦାର ସାହେବ କ'ଣ ବିଶେଷ କିଛି କହିଲେ କି ? (ତଥାପି ରାମଲାଲ୍ ନିରୁତ୍ତର । ସେ ତାଙ୍କ ସ୍ତ୍ରୀଙ୍କୁ ଭୟ କରନ୍ତି) ଏମିତି ଚୁପ୍ ରହିଲ ଯେ । ହେଲା କ'ଣ ? ସେ ସୁବିଧାରେ ବିଦାୟ ନେଲେ ତ ତୁମ ଉପରେ ସ୍କୁଲ୍ ବିଷୟରେ କ'ଣ କିଛି ଭାର ଦିଆଯାଇଛି ?

ରାମଲାଲ୍—ହେବ ଆଉ କ'ଣ ? ନାରଙ୍ଗନା ନେପଡ଼ା । ମୋର ଚେଷ୍ଟା ଓ ଅଧିକ ଅର୍ଥ ଦାନରେ ଗାଁରେ ବାଳିକା ପ୍ରାଥମିକ ବିଦ୍ୟାଳୟ ହେଲା, ଶେଷକୁ ଡେଙ୍ଗା ମୁଣ୍ଡରେ ଠେଙ୍ଗା । ମୋର ଏ ତନ୍ଦାମୁଣ୍ଡ ସତେ ଫାଟି ଯିବ କି ?

ସ୍ତ୍ରୀ—ଆହେ କଥା କ'ଣ ଫିଟାଇ କରି କହୁନ । ଏତେ ବ୍ୟସ୍ତ ହୋଇ ପଡ଼ୁଛ କାହିଁକି ?

ରାମଲାଲ୍—ତୁମେ ଶୁଣିଲେ ତ ନିଆଁ ହୋଇଯିବ । ମୁଁ କାହାକଥା କରିବି । ତୁମ କଥା ନା ତହସିଲଦାର ସାହେବଙ୍କ କଥା । ତଥାପି କହୁଛି । ତହସିଲଦାର ସାହେବ କହିଲେ, ତୁମେ ଏ ଗାଁର

ସରକରକାର । ସରକାରଙ୍କର ଏଜେଣ୍ଟ । ତୁମେ ତୁମ ଝିଅମାନଙ୍କୁ ଏ ବିଦ୍ୟାଳୟକୁ ପଢ଼ିବାକୁ ପଠାଅ । ତୁମ ଦେଖାଦେଖି ଅନ୍ୟ ଗ୍ରାମବାସୀ ଅବଶ୍ୟ ସେମାନଙ୍କର ଝିଅମାନଙ୍କୁ ପଠାଇବେ ।

ସ୍ତ୍ରୀ—କ'ଣ କହୁଛ, ତୁମେ କ'ଣ ପାଗଳ । ଯଦି ଝିଅମାନେ ସ୍କୁଲକୁ ଯାଆନ୍ତି ସେମାନଙ୍କୁ କେଉଁ ପୁଅମାନେ ବାହାହେବେ । ତା'ଛଡ଼ା ଆମ ଝିଅମାନଙ୍କ କଥା ବିଚାରକର । ରାଧା, ମଙ୍ଗଳା ତ ବାହା ହୋଇଗଲେ । ସେମାନେ ତ ପାଠ ପଢ଼ି ନାହାନ୍ତି । ଅ ଆ ଜାଣନ୍ତି ନାହିଁ । ରାଧା ତ ମା' ହେବାକୁ ଯାଉଛି । ଆଉ ଚମ୍ପା, ତା'ର ତ ନିର୍ବନ୍ଧ ସରିଯାଇଛି । ତା' ବରଘର ଯଦି ଶୁଣିବେ ଯେ ସେ ସ୍କୁଲରେ ପାଠ ପଢ଼ୁଛି, ସେମାନେ ନିଶ୍ଚୟ ବାହାଘର ଭାଙ୍ଗିଦେବେ ।

ରାମଲାଲ୍—ମୁଁ ଏବେ କରେ କ'ଣ ? ତହସିଲଦାର ସାହେବ ଓ ଗ୍ରାମବାସୀଙ୍କୁ ତ କଥା ଦେଇ ଆସିଛି । ତହସିଲଦାର ସାହେବଙ୍କ ଆଦେଶ ଅମାନ୍ୟ କରିବାକୁ ମୋର ସାହାସ ନାହିଁ । ଚାକିରି ଖଣ୍ଡିକଯିବ ରହିବ ନାହିଁ । ଗାଁ ଲୋକଙ୍କ ଆଗରେ ମୁହଁ ଦେଖାଇ ପାରିବି ନାହିଁ । ଏଣେ ମାଇଲେ ଗୋ-ହତ୍ୟା ତେଣେ ମାଇଲେ ବ୍ରହ୍ମହତ୍ୟା । ଓଃ ମଣିଷ ମନ ଏଥର । ସିଆଡ଼େ କୁମ୍ଭୀର ଆଁ କରିଛି, ଏ ପଟେ ବାଘ ଆଁ କରିଛି । ହେ ଭଗବାନ ! ତୁମେ ରକ୍ଷାକର ।

ସ୍ତ୍ରୀ—ଏତେ ବ୍ୟସ୍ତ ହୁଅନା । ମୁଁ ଯାହା କହୁଛି କର । ଖେଳକୁ ସ୍କୁଲକୁ ପଠା । ତାହାର ଏହି ଅସୁନ୍ଦର କୁତ୍ସିତ ମୁହଁ ତଥା ଅଜ୍ଞାନତା ଦେଖି ତାକୁ କିଏ ବା ବାହାହେବ । ସ୍କୁଲର ଶିକ୍ଷୟିତ୍ରୀମାନଙ୍କ ଉପରେ ତା'ର ଭାର ଦେଇଦିଅ । ସେମାନେ ତା' କଥା ବୁଝନ୍ତୁ । ତହସିଲଦାର ସାହେବଙ୍କ କଥା ବି ରହିବ, ଆଉ ଆମର ଯେଉଁ ଖେଳକୁ ନେଇ ସମସ୍ୟା ତାହାର ବି ସମାଧାନ ହେବ ।

ରାମଲାଲ୍—ବେଶ୍ ବେଶ୍ ତାହାହିଁ କରିବା । ମାହାଳିଆ କୁହାଯାଉଛୁ, ସ୍ତ୍ରୀ ଠାରୁ ବଳ ବନ୍ଧୁ ଆଉ କେହି ନାହିଁ । (ରାମଲାଲ୍ ସ୍ତ୍ରୀଙ୍କୁ ନିଜ ଆଡ଼କୁ ଆଉଯାଇ ଆଣୁଥିଲେ, ଯେମିତି କି ମୁହଁରେ ଚୁମାଟିଏ ଆଙ୍କି ଦେବେ । )

ସ୍ତ୍ରୀ—ଗୁଡ଼ ଗୁଡ଼ ଏ ବୁଢ଼ା କାଳରେ ଏ ରସିକତା କାହିଁକି ?

( ପରଦା ପଡ଼ିଗଲା )



[ ପରଦା ଉଠିଲା ବେଳକୁ ଦେଖାଗଲା ରାମଲାଲ୍ ସାତ ବର୍ଷର ଝିଅ ଭୋଳାର ହାତଧରି ଟାଣୁଛନ୍ତି, ଆଉ କହୁଛନ୍ତି— ]



ଆ, ମୋ ସଙ୍ଗରେ ଆ' । ମୁଁ ତୋତେ ସ୍କୁଲ୍‌କୁ ନେଇଯିବି ।

(ଭୋଳା ଡରି ଯାଇଥିଲା । ମନକୁ ମନ କହିଲା—)

ଭୋଳା--(ସ୍ୱଗତ) ସ୍କୁଲ୍, ସେ ପୁଣି କ'ଣ ? କି ପଦାର୍ଥ, କି ସ୍ଥାନ କିଏ ।
ହଁ ହଁ ମୋର ମନେପଡ଼ୁଛି, କାଲିଦିନ ତଳେ ଆମ ବୁଢ଼ୀ ଗାଈ

ଲକ୍ଷ୍ମୀକୁ ଘରୁ ତଡ଼ିଦିଆଗଲା । କଂସେଇ ତାକୁ କିଣିନେଲା । ତ ହାହେଲେ ବାପା ମୋତେ ସେହି କଂସେଇକୁ ବିକି ଦେବେ । ସେ କହିଲା—ନ-ନ-ନ-ନ-ନା । ନା-ନା-ନା ।

( ବାପାଙ୍କ ହାତ ମୁଠାରୁ ନିଜେ ଟାଣି ଗୁଡ଼ିଗଲା ଝିଅଟା ଉପରେ ଯେମିତି ଗ୍ଲାନିଆ ହୋଇଯାଇଛି । )

ରାମଲାଲ୍—ଆରେ ବୋକି, ତୋର ହୋଇଛି କ'ଣ ? ମୁଁ ତୋତେ ସ୍କୁଲ୍‌କୁ ନେଉଛି । ( ଗର୍ଜି ) ତୋତେ ଧାରୁଆ ଛୁରୀ ଧରିଥିବା କଂସେଇ ପାଖକୁ ନେଉନାହିଁ । (ସ୍ତ୍ରୀଙ୍କୁ କହିଲେ) ଆଜ ସେ ସୁନ୍ଦର ଭଲ ପୋଷାକ ହେଲେ ପିନ୍ଧୁ । ନଚେତ୍ ସ୍କୁଲର ଶିକ୍ଷୟିତ୍ରୀ ତଥା ଅନ୍ୟ ସ୍କୁଲ୍ ଝିଅମାନେ ତାକୁ ଏପରି ମଇଳା ଚିରା ପୋଷାକରେ ଦେଖି ଆମକୁ କ'ଣ କହିବେ ? ଯାହାହେଲେ ମଧ୍ୟ ସେତ ଆମ ଝିଅ । ହୁଏତ ସେ ଅବୋଧ ହୋଇପାରେ, ଅବୁଝା ହୋଇପାରେ ।

ସ୍ତ୍ରୀ—ତା'ର ବା ଜାମା କାହିଁ ? ଚମ୍ପା ବଡ଼ ହୋଇଯିବା ପରେ ତା'ର ଜାମା ତ ତାକୁ ଟାଇଟ ହୋଇଯାଏ ବା ତା' ଜାମା ଚିରିଗଲେ ତାକୁ ମୁଁ ସିଲେଇ କରିଦିଏ । ତା'ର ସେହି ପୁରୁଣା ଛିଣ୍ଡା ଜାମାକୁ ମଧ୍ୟ କେହି ହେଲେ ସଫା କରି ଦିଅନ୍ତି ନାହିଁ । ସେଥିରେ ସାବୁନ ବା ସୋଡ଼ା ହାତ ଟିକେ ବାଜେନି । ସେ ସଦାସର୍ବଦା ସେହି ଛିଣ୍ଡା ମଇଳା ଜାମା ପିନ୍ଧି ଥାଏ । ବର୍ତ୍ତମାନ ଭଲ ଜାମା ବା କାହୁଁ ଆଣିବି । ଦେଖେ ।
( କିଛି ସମୟ ଭାବି )

ହଁ ହଁ ଥରେ ଚମ୍ପାପାଇଁ ଖଣ୍ଡେ ନୂଆ ଜାମା ଆଣିଥିଲି । ତାକୁ ସେ ତିନି ଚାରିଥର ପିନ୍ଧିଥିଲା । ମାତ୍ର ତିନି ଚାରିଥର ଧୁଆହେଲା ପରେ ତାହା ଟାଇଟ ହୋଇଗଲା । ମୁଁ ତାକୁ ସଫାକରି, ଇସ୍ତ୍ରୀ ଦେଇ ରଖି

ଦେଇଛୁ । ସେଇଟା ହେଲେନ୍‌କ ଠିକ୍ ହେବ । ଆଉ ହାତ ଝିଅଟା କେତେଦିନରୁ ଗାଧୋଇ ନାହିଁ । ମୁଣ୍ଡବାଳଟକ ଜଟା ବାନ୍ଧି ଗଲାଣି । ମୁଁ ତାକୁ ଗାଧୋଇ ଦଉଛୁ । ମୁଣ୍ଡରେ ଟିକେ ନଡ଼ିଆତେଲ ଲଗାଇ ଦିଏ । ମୁଣ୍ଡ କୁଣ୍ଡାଇ ଦିଏ । ତା'ପରେ ସେ ଜାମା ପିନ୍ଧି ସ୍କୁଲକୁ ଯିବ । ତୁମେ ଟିକେ ଅପେକ୍ଷା କର ।

ହେଲେନ—(ସ୍ୱଗତ) —ତାହାହେଲେ ବାପା ମୋତେ କଂସେଇ ଖାନାକୁ ନେଇ ନାହାନ୍ତି । ମୋତେ ଯେଉଁଠାକୁ ନେଇଛନ୍ତି, ତାହା ନିଶ୍ଚୟ ଆମ ଏ ଘରଠାରୁ ଭଲ ।



## ( ୭ )

[ ସ୍ଥାନ—ବିଦ୍ୟାଳୟ ଗୃହ । ]

ରାମଲାଲ୍—ଆରେ ସ୍କୁଲକୁ ତ ସବୁ ଝିଅମାନେ କେତେବେଳୁ ଆସି ଗଲେଣି । ଠିକ୍ ଅଛୁ । (ପ୍ରଧାନ ଶିକ୍ଷୟିତ୍ରୀଙ୍କ ହାତକୁ ଶୈଳର ହାତ ବଢାଇ ଦେଇ ) ନିଅନ୍ତୁ ଆଜ୍ଞା ! ଆପଣଙ୍କର ଏହି ନୂଆ ଛାତ୍ରୀଟିକୁ ଦେଖନ୍ତୁ, ସେ ଯଦି ଆପଣଙ୍କ ଯତ୍ନରେ ଝିଅଭଳି ଝିଅଟିଏ ହୋଇଯାଏ—

(ଶୈଳ ତାଙ୍କ ମୁହଁକୁ ଚାହିଁଲା, ଆଖିରେ ତା'ର ଲୁହ ଛଳ ଛଳ)

ପ୍ର: ଶି:--ଆ, ମା' କିଛି ଭୟ କରେନି । ଦେଖୁନୁ, ହେଇ ଇଆଡ଼େ ଚାହାଁ । କେତେ ଘର, କୋଠର କେତେ ଝିଅ । କିଏ କ'ଣ କାନ୍ଦୁଛି । ସମସ୍ତେ ହସୁଛନ୍ତି । ତୁ ବି ତାଙ୍କ ମେଳରେ ହସିବୁ, ଖେଳିବୁ । ଏ ରମା, ତାକୁ ତମ ଶ୍ରେଣୀରେ ବସା, ନିଅ । (ଶୈଳର ଆଖିରୁ ଜଣାଯାଉଥିଲା ସେ ଯେମିତି ଡରି ଯାଇଛି ।) ଯା' ସେହି କଣରେ ବସ ।

ଶୈଳ—(ମନେ ମନେ) ସ୍କୁଲ ତେବେ କ'ଣ ଏମିତି । ସେଠି କ'ଣ ସବୁ ହେଉଛି ? ବେଶ୍ ତ ମୋ ଭଳି କେତେ ଝିଅ । ମୋ ଭଉଣୀମାନେ ତ ମୋତେ କେବେହେଲେ ମିଠା କଥା କହି ନାହାନ୍ତି । ମୁଁ ଭାବୁଛି ଏଇ

ପିଲାମାନଙ୍କ ମଧ୍ୟରୁ କିଏ କହିଲେ ଜଣେ ମାଙ୍କ ହୋଇଯିବ । ସେ ବଡ଼ ସବୁ ପିଲାମାନଙ୍କୁ କଅଣ ସବୁ କହୁଛନ୍ତି, ମୁଁ ତ ବୁଝିପାରୁନ ।

(ସେ କାନ୍ଥରେ ଟଙ୍ଗା ଯାଇଥିବା ଛବି ଆଡ଼କୁ ଚାହିଁଲା ।)

ବଡ଼—ଏ କ'ଣ ଦେଖୁଛୁ ?

ଖେଳ--(କଥାଟା କହିପାରୁନ--ମନକୁମନ କହିଲା)— କି ସୁନ୍ଦର ରଙ୍ଗ ! ହଁ ଏହା ଗୋଟାଏ ଘୋଡ଼ା । ତହସିଲଦାର ସାହେବ ଆସିଥିଲା-ବେଳେ ଠିକ୍ ଏମିତି ଗୋଟାଏ ଘୋଡ଼ାଚଢ଼ି ଆସିଥିଲେ । ପୁଣି ଏ ଛେଳି ଆମ ପଡ଼ଶା ଚନ୍ଦ୍ରୀ ଘର ଛେଳି ଭଳି କଳା । ଆମ୍ଭ ତୋଟାରେ ଥିବ । ଶୁକ ଭଳି ଏ ଶୁକପକ୍ଷୀ । ଆଉ ଏହି ଗାଈଟା, ଠିକ୍ ଆମ ଗାଈ ଲକ୍ଷ୍ମୀ ଭଳି ।



ବଡ଼—(ହସ ହସ ମୁହଁରେ) ଆରେ ମୋ ପୁଅଟା ମା'ଟି, ତୋ ନାଁ କ'ଣ ?

ଖେଳ—ଭ-ଭେ-ଭେ ।

ଅନ୍ୟ ଏକ ଝିଅ—ବଦ୍ଧ, ତା' ନା ଖେଳ ।

ଅନ୍ୟ ଝିଅମାନେ ଏକସ—ହା ହା, ହି ହି-(ହସି ଉଠିଲେ) ।

(ଖେଳକୁ ଲଜ ଲଗିଲା—ସେ ପୁଣିଥରେ ଚେଷ୍ଟାକଲା)

ଖେଳ—ଭେ-ଭେ-ଭେ । (ସେ କାନ୍ଦ ପକାଇଲା । ଆଖିରୁ ଧାର ଧାର ଲୁହ ବୋହିପଡ଼ିଲା—ସେ ତା' ମୁଣ୍ଡ ନୋଇଁ ଦେଲା ।)

(ଝିଅମାନେ ତଥାପି ହସୁଥାନ୍ତି) ହିଁ ହିଁ ହା, ହା ହା···

ଘଣ୍ଟା ବାଜିଲା । ସବୁ ଝିଅମାନେ ସ୍କୁଲ ଛାଡ଼ି ଚାଲିଗଲେ ।

× × × ×

(ତସ୍ମହବୋଲା ଡାକଟିଏ ଖେଳକୁ ଶୁଭିଲା ।······)

ବଦ୍ଧ—ମା' ଖେଳ—(ଏମିତି ଡାକ ସେ କେବେ ଶୁଣି ନ ଥିଲା । ଯାହା ଶୁଣିଥିଲା ସେ ଥିଲା ବଡ କର୍କଶ ଓ ଘୃଣା ବ୍ୟଞ୍ଜକ) ମା ଖେଳ, ଉଠ ସ୍କୁଲ ଛୁଟି ହେଲାଣି । ସବୁ ଝିଅମାନେ ଘରକୁ ଚାଲିଗଲେଣି ତୁ । ଯିବୁ ନାହିଁ ? ( ଖେଳ ଉଠି ଛିଡ଼ା ହେଲା ) ବେଶ୍, ଏବେ ତୋ ନାଁଟି ମୋତେ କହିଲୁ !

ଖେଳ— ( ଖେଳର ସାରା ଦେହ ଝାଳରେ ଭିଜିଗଲାଣି । ମନେ ମନେ) —ପୁଣିଥରେ କ'ଣ ମୋର ଖନଖନ କଥା ମୋତେ ଅପମାନିତ କରିବ । ନା, ବଦ୍ଧ ମୋ କଥା ଶୁଣି ନିଶ୍ଚୟ ହସିବେନି । କେଉଁ

ଦୟାଳୁ । ସେ ମୋ ବାପା, ଭାଇ ମା ଭଉଣୀ ମାନଙ୍କ ଭଳି ନୁହନ୍ତି ।
( କାନ୍ଦିଲା ) - ଭ-ଭ- ଭୋ-ଭୋ-·········

ଦାଦା—ବେଶ୍ ବେଶ୍, ଠିକ୍ ଅଛୁ, ଏବେ ପୂରା ନାଁଟି ?

ଭୋଳ —ଭ-ଭୋ--ଭୋ—ଭୋଳ । ( ମନେ ମନେ ) ମୋର ତ ବିଜୟ ।

ଦାଦା— (ଅତି ସ୍ନେହରେ ତା ପିଠି ଆଉଁସିଦେଇ)—ବେଶ୍ ତ । ମା ଭୋଳ ! ତୋ ମନରୁ ଭୟ ଛାଡ଼ିଦେ । ଅନ୍ୟମାନଙ୍କ ଭଳି ତୁ ମଧ୍ୟ କଥା କହିବୁ ।

ଭୋଳ—( ଦାଦାଙ୍କ ମୁହଁକୁ ଚାହିଁ ) ସତେ ?

ଦାଦା—ହଁ, ହଁ, ସେତ ଅତି ସହଜ କଥା । ତୁ ସବୁଦିନ ସ୍କୁଲକୁ ଆସିବୁ । ଆସିବୁତ ?

ଭୋଳ— ( ହଁ ସୂଚକ ମୁଣ୍ଡହଲାଇଲା । )

ଦାଦା — ନା, ନା, ସେମିତି ନୁହଁ । ବଡ଼ ପାଟି କରି କହ ।

ଭୋଳ—ହଁ, ହଁ, -ନ-ନ- ନିଶ୍ଚୟ ।

ଦାଦା - ଦେଖିଲୁ ତ । ମୁଁ ତୋତେ ଏବେ କହୁ ନ ଥିଲି କି ? ନେ, ଏ ବହିଟି ନେ ।

ଭୋଳ— ( ବହିଟି ନେଲା ) ( ପୃଷ୍ଠା ଗୋଟି ଗୋଟିକରି ଓଲଟାଇଲା ) ( ମନେମନେ )—ଆରେ ଏଥିରେ କେତେ ଛବି । ପୁଣି ସବୁତକ ରଙ୍ଗୀନ—କୁକୁର, ବିଲେଇ, ଛେଳି, ଘୋଡ଼ା, ଶୁଆ, ବାଘ, ଗାଈ, —ଏତ ଠିକ୍ ଆମ ଲକ୍ଷ୍ମୀ ଭଳି । ଏଁ ସବୁ ଛବି ତଳେ ବଡ଼ ବଡ଼

ଅକ୍ଷରରେ—କଳା ଅକ୍ଷରରେ କ'ଣ ଲେଖାଅଛି । ବୋଧେ ସବୁ ଛବିର ନାଁ ।

ବଦ୍ଧ—ଶ୍ରେକ ! ମାସକ ମଧ୍ୟରେ ତୁ ଏ ବହି ଖଣ୍ଡି ପଢ଼ି ପାରିବୁ ? ମା, ତା ପରେ ତୋତେ ଏହାଠାରୁ ଆଉ ବଡ଼ ବହି ଦେବି । ତା' ପରେ ତାଠାରୁ ବଡ଼ ବହି । ଦିନ ଆସିବ, ଏ ଗାଁର ସବୁ ଲୋକଙ୍କୁ ତୁ ପାଠରେ ବଳି ଯିବୁ । ତୋର ଜ୍ଞାନ ବଢ଼ିଯିବ । ସେତେବେଳେ ତୋତେ ଦେଖି ଆଉ କେହି ହସିବେ ନାହିଁ । ତୋତେ ଲୋକମାନେ ଭକ୍ତି କରିବେ । ତୋ କଥା ମନ ଦେଇ ଶୁଣିବେ । ଆଉ ସେତେବେଳେ ତୋର ଏ ଖନା ଦୋଷ ସାମାନ୍ୟ ପରିମାଣରେ ବି ନ ଥିବ । ବୁଝିଲୁ । ଯା, ଏବେ ଘରକୁ ଯା । କାଲି ସକାଳେ ଯେମିତି ତୁ ସବୁ ପିଲାଙ୍କ ଆଗରୁ ଆସିବୁ, ତୁ ଶୁନ ହେବୁ ।

ଶ୍ରେକ—( ହଠାତ୍ ତା ମନେ ମନେ କହିଲା )—(ଏଁ ଏକଣ ମୁଁ ଶୁଣୁଛି, ଗାଁ ମନ୍ଦିର ଘଣ୍ଟା ଘଣ୍ଟି ଯେ ଏକା ଥରେ ବାଜି ଉଠୁଛି । ଏ କ'ଣ ସ୍କୁଲ ଆଗରେ ଏ ଗଛରେ କେତେ ବଡ ବଡ଼ ଲାଲ ଫୁଲ ଫୁଟି ଉଠିଲା । ମୋ ମନ ଫୁଲି ଉଠୁଛି । କି ଆଶା )ମୋର ନୂଆ ଜୀବନ ) ହଁ ହଁ ହ-ହ-ମୁଁ-କାଲି ଆ-ଆ-ସିବ ।



( ସମସ୍ତ ରାତ୍ର ଦଶଟା ହେବ । ରାମଲାଲ୍ ଓ ତାଙ୍କ ସ୍ତ୍ରୀ ଏକାନ୍ତରେ କଥାବାର୍ତ୍ତା ହେଉଛନ୍ତ । ସୋଲ ବଡ଼ ହୋଇ ଯାଇଛି ପାଖ ବଖରାରେ ଶୋଇଛି; ମାତ୍ର ନଦରେ ନୁହେ । ଏ ଦୁହିଁଙ୍କ କଥା ଗାଳପାର ସବୁ ଶୁଣୁ ଛି । )

ରାମଲାଲ—ଶୁଣୁଛ । ତମ୍ଭାର ବାହାଘରଚ ହୋଇଗଲା । ଯାହାହେଉ ଟଙ୍କା ଦଶ ହଜାରରେ ସବୁକାମ ସୁରୁଖୁରୁରେ ହୋଇଗଲା । ତମ୍ଭାକୁ ଅନ୍ୟ ଦୁଇଝିଅଙ୍କ ଅପେକ୍ଷା ସୁନା ଟିକଏ ବେଶି ଦିଆ ଯାଇଛି । ପ୍ରାୟ ଦଶଭରି ହେବ ।

ସ୍ତ୍ରୀ—ହଁ, ତେବେ ବର୍ତ୍ତମାନ ହେଲା ସୋଲ କଥା । ତାକୁ ଅଠର ବର୍ଷ ହେଲା । ଅବଶ୍ୟ ସେ ଆମ ଗାଁ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକ ପାଶ୍ କଲା । ପୁଣି ପ୍ରଥମଶ୍ରେଣୀରେ ।

ରାମଲାଲ୍—ଖୁଣ ଯେଉଁଠି, ଗୁଣ ସେଇଠି । ଆମ ସୋଲ ପିନା ଖନ, ହେଲେ ଆମ ଅନ୍ୟ ତନ ଜଣ ଝିଅ କେହି ହେଲେ ତ ପାଠ ପଢ଼ି ନାହାନ୍ତ । ଗାଁ ଯାକର ଝିଅମାନଙ୍କ ମଧ୍ୟରେ ଆମ ସୋଲ ଏକା ପ୍ରଥମଶ୍ରେଣୀରେ ମାଟ୍ରିକ ପାଶ୍ କଲା ।

ସ୍ତ୍ରୀ—ଆମ ଏଇ ଛୋଟ ପଲ୍ଲୀ ଗାଁ ଟିର ବେଶ୍ କିଛି ଉନ୍ନତ ହୋଇଗଲାଣି । ଦେଖ ଛୋଟ ପ୍ରାଥମିକ ବିଦ୍ୟାଳୟଟି ହାଇସ୍କୁଲ ହେଲା । ସେ ତିନି ଘରର ସିନେମା ଚାଲିଛି । ଆମ ଗାଁ ରେଳଷ୍ଟେସନରେ ମେଲ୍ ଏକ୍ସପ୍ରେସ୍ ବି ରହିଲାଣି ।

ରାମଲାଲ—ହଁ, ତହସିଲଦାରଙ୍କଠାରୁ ଆରମ୍ଭ କରି କଲେକ୍ଟର ସାହେବଙ୍କ ପର୍ଯ୍ୟନ୍ତ ବାବୁଭୟାମାନେ ଏ ଗାଁକୁ ଆସୁଛନ୍ତି । ଏବେ ପୁଣି ଚୂଲାଭଣା କାରଖାନାଟିଏ ବସିଲାଣି । ସେ ଦିନ ଡେପୁଟି ମିନିଷ୍ଟର ତାହାର ଶୁଭ ଉଦ୍‌ଘାଟନ କଲେ । ମୋଟାମୋଟି ଗ୍ରେଟ ପଲ୍ଲୀଗାଁଟି ଗୋଟିଏ ଗ୍ରେଟ ସହରରେ ପରିଣତ ହୋଇଗଲାଣି ।

ସ୍ତ୍ରୀ—ହଁ ସବୁତ ହେଲା, ଏବେ ସ୍ନେହ ବାହାଘର କଥା ଟିକଏ ଚିନ୍ତାକର । ଝିଅଟାକୁ ଆଉ କେତେଦିନ ଅଭିଆଡ଼ୀ ରଖିବା । ଅଠର ବର୍ଷ ହୋଇଗଲା । ମନେରଖ ଝିଅ ଝିଅ । ଯେତେ ପାଠ ପଢ଼ିଲେ କଅଣ ହେବ ।

ରାମଲାଲ—ତାହା ହେଲେ ମୁଁ କଅଣ ହରିଶଙ୍କରଙ୍କ ପ୍ରସ୍ତାବ ଗ୍ରହଣ କରିବି ?

ସ୍ତ୍ରୀ—ନିଶ୍ଚୟ । ଆମର ଏହି ହତଭାଗିନୀର ଭାଗ୍ୟ ବେଶ ଉଜ୍ଜ୍ୱଳ । ଏମିତି ଜଣେ ଧନୀ ବର ହାତରେ ସେ ପଡ଼ିବ, ବଗିଚ ଏକ ଦୋକାନ, ବଜାରଘର ଅଛି, ତା ଛଡ଼ା ମୁଁ ଶୁଣିଥିଲି ବ୍ୟାଙ୍କରେ ତାଙ୍କର ହଜାର ହଜାର ଟଙ୍କା ଜମା ଅଛି । ତା ଛଡ଼ା ସେ କୌଣସି ଯୌତୁକ ଦାବୀ କରୁ ନାହାନ୍ତି ।

ରାମଲାଲ୍—ସେ ସବୁ ତ ଠିକ୍ ଅଛି, କିନ୍ତୁ ସେ ସେମିତି କିଛି ଯୁବକ ନୁହେଁ । ତୁମେ ଜାଣ, ସେ ପ୍ରାୟ ମୋ ବୟସର । ତା ଛଡ଼ା ସେ ବିପତ୍ନୀକ । ଆଜିମଧ୍ୟ ତାହାର ପ୍ରଥମ ସ୍ତ୍ରୀର ପିଲାମାନେ ବେଶ୍ ବଡ଼ ବଡ଼ । ଏପରିକି ଆମ ସ୍ନେହ ଅପେକ୍ଷା ବୟସରେ ବଡ଼ ।

ସ୍ତ୍ରୀ—ସେଥିରେ କଅଣ ଅଛି ? ଏଇ ୪୫ ବା ୫୦ ବର୍ଷ ହେବ । ଜଣେ ପୁରୁଷ ଲୋକ ପକ୍ଷରେ ଏ ବୟସ କିଛି ନୁହେଁ । ଆମର ଭାଗ୍ୟ ଭଲ

ଯେ ସେ ଅନ୍ୟ ଏକ ଗାଁର ଲୋକ ଏବଂ ଖେଳର ବସନ୍ତ ଚିହ୍ନ ଥିବାର ଜାଣେ ନାହିଁ ବା ଖେଳ ଯେ ଗୋଟାଏ ନିର୍ବୋଧ ବାଳିକା ତାହ ଜାଣେ ନାହିଁ । ଆମେ ଯଦି ଏହି ପ୍ରସ୍ତାବଟି ଗ୍ରହଣ ନ କରିବା ତେବେ ଖେଳ ସାରା ଜୀବନ ଅବିବାହିତା ରହିଯିବ ।

ରାମଲାଲ – ହଁ, ତେବେ ତ ମୁଁ ଭାବୁଛି ଖେଳ କଅଣ କହିବ । ଶିକ୍ଷିତା ଝିଅଟାଏନା ।

ସ୍ତ୍ରୀ—ସେ ଅଳ୍ପ ଝିଅଟା ବା କଅଣ କହିବ ? ସେ ଗୋଟାଏ ମୂକ ଗାଈ ଭଳି । ତୁମେ ଲକ୍ଷ୍ମୀକୁ କଂସେଇକୁ ଦେଇଦେଲ । ସେ ପଦେ କଥା କହିଛି ନା ?

ରାମଲାଲ—ହଁ ହୋଇପାରେ, ତୁମେ ଯାହା କହୁଛ, ତା ବି ଠିକ୍ ।



[ ବିଶମ୍ଭର ବରବେଶ ସାଜି ଏକ ବିରାଟ ଶୋଭାଯାତ୍ରାରେ ଗାଁ ଦାଣ୍ଡରେ ଅଗ୍ରସର ହେଉଛନ୍ତି । ଚଡ଼, କୁର୍ମି ଇତ୍ୟାଦି ବାଜଣାରେ ଗାଁ । ଦାଣ୍ଡ ଉଚ୍ଛୁଳି ପଡ଼ୁଛି । ପଛକୁ ବ୍ୟାଣ୍ଡବାଜା ଦଳ କୌଣସି ଏକ ସିନେମା ସ୍ୱରର ବାଜା ବଜାଉଛନ୍ତି । ତା ପଛକୁ ଫୁଲ ବେଷଣୀ ଗ୍ୟାସ୍ ଲାଇଟରେ ଦାଣ୍ଡ ଝଲ ଝଲ ଦେଖା ଯାଉଥାଏ । ମଝିକୁ ବିଶମ୍ଭର ଘୋଡ଼ା ଉପରେ ବସିଥାନ୍ତି ।)

ରମଲାଲ—ମୋର ଚତୁର୍ଥ ତଥା ଶେଷ କନ୍ୟା କି ଭାଗ୍ୟବତୀ । ତା'ର ଉପର ଭଉଣୀମାନେ ଏପରି ଜାକ୍‌ଜମକରେ ବିଭା ହୋଇ ନ ଥିଲେ । ବିଶମ୍ଭର ବେଶ ଧନୀ ଲୋକ ।

ମଙ୍ଗଳା—ବାପା ଗୋଟାଏ ବୋକୀ ଝିଅପାଇଁ ଏପରି ଏକ ଧନୀ ବରପାତ୍ର ଠିକ୍ କଲେ । ସେ ପୁଣି ଏତେ ଜାକ୍‌ଜମକରେ ଏଣୁ ବୋକୀ ଝିଅଟାକୁ ବାହା ହେବ ।

ଚମ୍ପା—ଠିକ୍ କଥା, ହେଲେ କଅଣ ହେବ, ବୁଢ଼ାବର । ଦୋଅଡ଼ବର ।

ରାଧା—ସେତିକି ନୁହଁ ସେ ପୁଣି ଗ୍ରେଣ୍ଠା । ବୁଢ଼ା ଗ୍ରେଣ୍ଠା ବରକୁ ବୋକୀ ଅସୁନ୍ଦରୀ କନ୍ୟା ।

( ସମସ୍ତେ ଏକାଥରେ ହୁ ହୁ ହୋଇ ହସି ଉଠିଲେ ।

× × ×

( ବେଦ ଉପରେ ପୁରୋହିତ ବସିଛନ୍ତି । ହୋମାଗ୍ନି ହୁତ୍ ହୁତ୍ ଜଳୁଛି ଚତୁର୍ଦ୍ଦିଗରେ—ବେଦ ଚାରିପଟେ ବହୁତ ଲୋକ ଛିଡ଼ା ହୋଇଛନ୍ତି । ଏହି ସମୟରେ ବର ବଟେଶ୍ୱର ଗ୍ଲେଟେଇ ଗ୍ଲେଟେଇ ଆସି ସେଠା ଆସୀନ ହେଲେ । )

ପୁରୋହିତ—ଶୁଭବେଳା ଉପସ୍ଥିତ । ଲଗ୍ନ ଗଡ଼ି ଯିବ ।ଏବେ କନ୍ୟାକୁ ବେଦ ଉପରକୁ ଆଣ ।

( ବଟେଶ୍ୱରଙ୍କର ଜଣେ ସାଙ୍ଗ କହିଲେ ) ଦେଖ, ଦେଖ-ଏ କପର ଉଦ୍‌ବେଗ । ଟିକଏ ଅପେକ୍ଷା କରି ପାରୁନ । ଅଳ୍ପକେ ମୁହଁରେ ଖଡ଼ା ଗଛ ଉଠିଲେ କହିବ—ବେଶ୍, ବେଶ୍ ସ୍ତ୍ରୀ ହେଉଛି ।

( ଏହି ସମୟରେ ନାଲ୍ ରେଶମୀ ପାଟ ପରିଧାନ କରିଥିବା ଶ୍ରେନକୁ ବେଦ ଉପରକୁ ଅଣାଗଲା ଓ ହୋମାଗ୍ନି ପାଖ ନିରୂପିତ ସ୍ଥାନରେ ତାହାକୁ ବସାଇ ଦିଆଗଲା )

( ବଟେଶ୍ୱରଙ୍କର ଆଉଜଣେ ବନ୍ଧୁ ତାଙ୍କ କାନରେ ଚୁପ୍ ଚୁପ୍ କହିଲେ । — ) ବନ୍ଧୁ ଏବେ କନ୍ୟାକୁ ବରଣମାଳା ଦିଅ ।

( ହଳଦିଆ ଗେଣ୍ଡୁ ଫୁଲର ଗୋଟିଏ ମାଳଧରି ବର ପ୍ରସ୍ତୁତ ହୋଇ ଗଲେ । କେହି ଜଣେ ସ୍ତ୍ରୀଲୋକ କନ୍ୟା ମସ୍ତକରୁ ରେଶମୀ ପାଟର ଓଢ଼ଣାକୁ ଅପସାରଣ କଲେ । ବଟେଶ୍ୱର କନ୍ୟାମୁଖକୁ ସଙ୍ଗେ ସଙ୍ଗେ ଦେଖିନେଲେ । କିନ୍ତୁ ସେ ଆଉ ବରଣମାଳା ଦେଲେ ନାହିଁ । ତାଙ୍କ ହାତରେ ଫୁଲହାରଟି ସେମିତି ରହିଗଲା । କନ୍ୟା ଆସ୍ତେ ମୁଣ୍ଡରେ ପୁଣି ଓଢ଼ଣା ଦେଇଦେଲା । )

ବଟେଶ୍ୱର—(ତାଙ୍କର ବନ୍ଧୁଙ୍କୁ ନିର୍ଦ୍ଦେଶକରି କହିଲେ, ତୁମେ କନ୍ୟାକୁ ଆଗରୁ ଦେଖିଥିଲକି ? ତାର ସାରା ମୁହଁ ଯାକ ବସନ୍ତ ଚିହ୍ନ ।

ବନ୍ଧୁ—ହଁ ହେଲେ କଅଣ ହେଲା । ତୁମେ ତ ଆଉ ଯୁବକ ନୁହଁ ।

ବଣମ୍ବର—ହୋଇପାରେ । ମୁଁ ଯଦି ଏହି କନ୍ୟାକୁ ବିବାହ କରିବି, ତାହାହେଲେ କନ୍ୟାର ପିତା ମୋତେ ୫୦୦୦ ଟଙ୍କା ଦେବେ ।

ରାମଲାଲ୍—(ରାମଲାଲ୍ କିଛି ସମୟ ପର୍ଯ୍ୟନ୍ତ ନିର୍ବାକ ହୋଇଗଲେ।) ଓଃ, ମୋ ସାରା ଜୀବନରେ ମୁଁ ଏପରି ହଇରାଣ ଓ ଅପମାନିତ ହୋଇନାହିଁ । ମୋତେ ପାଞ୍ଚହଜାର ଟଙ୍କା ଦେବାକୁ ହେବ, ମୁଁ ଯେ ମରିଗଲି ! (ସେ ତାଙ୍କର ସମସ୍ତ ସମ୍ମାନକୁ ଜଳାଞ୍ଜଳି ଦେଇ ମୁଣ୍ଡରୁ ପଗଡ଼ି କାଢ଼ି ଭାବି ଜାମାତାର ପାଦ ପାଖରେ ରଖି ଦେଲେ ।)

ରାମଲାଲ୍—ବାବା, ମୋତେ ଏପରି ଲୋକହସା କରନାହିଁ । ଦୁଇହଜାର ଟଙ୍କା ନିଅ ।

ବଣମ୍ବର—ନା, ପାଞ୍ଚହଜାର । ନୋହେଲେ ଆମେ ଫେରିଯାଉଛୁ । ଆପଣଙ୍କ ଝିଅକୁ ରଖନ୍ତୁ ।

ରାମଲାଲ୍—ବାବୁ, ତିନିହଜାର ନିଅ । ତୁମେ ଯଦି ଫେରିଯାଅ, ଏ ଗାଁରେ ମୁଁ ଆଉ ମୁହଁ ଦେଖାଇ ପାରିବି ନାହିଁ ।

ବଣମ୍ବର—ତାହାହେଲେ ପାଞ୍ଚହଜାର ଟଙ୍କା ବାହାର କର ।

× × × ×

(କିନ୍ତୁ ସମସ୍ତ ଦର୍ଶକ ସବୁଆଡ଼ ନୀରବ ନିସ୍ତବ୍ଧ । ରାମଲାଲ୍ ଘରକୁ ଭିତରକୁ ଗଲେ । ସିନ୍ଧୁକ ଖୋଲି ପାଞ୍ଚହଜାର ଟଙ୍କାର ଶହେଟଙ୍କି ବ୍ୟାଙ୍କ ନୋଟ ଆଣି—ସର୍ବସମକ୍ଷରେ ଗଣିବାକୁ ଲାଗିଲେ । ତାହାପରେ—



ରାମଲାଲ୍—ନିଅନ୍ତୁ ପାଞ୍ଚହଜାର ଟଙ୍କା । (ବରର ପାଦ ପାଖରେ ନୋଟ-ବିଡ଼ା ରଖିଦେଲେ । )

ଧନପତି—(ଗର୍ବରେ ଯେମିତି ସ୍ଫିତ ହୋଇଗଲେ । ଜୁଆ ଖେଳରେ ସେ ବିଜୟୀ ହେଲେ । ତାଙ୍କ ମୁହଁରେ ବିଜୟର ହସ ଫୁଟି ଉଠିଲା । ସେ କହିଲେ—) "ଦେଖ୍, ମୋତେ ଫୁଲହାର ଦିଅ ।"

(ପୁଣିଥରେ କନ୍ୟା ମସ୍ତକରୁ ଓଢ଼ଣା ଅପସାରିତ ହେଲା । କିନ୍ତୁ ଏଥର ସେ ଆଉ ମୁଣ୍ଡ ତଳକୁ ପୋତି ନ ଥିଲା । ସେ ଉପରକୁ ଚାହିଁଥିଲା ।

ସେ ତାହାର ଘୃଣ ସ୍ୱାମୀର ମୃତ ଉପରେ ଦୃଷ୍ଟି ନିବଦ୍ଧ କଲ । ଶାନ୍ତ ସରଳ ବୃଦ୍ଧାଣୀ । ସେଥିରେ ନ ଥିଲ କ୍ରୋଧ । କିନ୍ତୁ ଥିଲ ଶୀତଳ ଘୃଣାଭାବ ।)

(ବିଶମ୍ଭର ଫୁଲଦାର ଛେକ ଜନ୍ୟା ମସ୍ତକରେ ଲମ୍ବାଇବାକୁ ବାହାରିଲେ । କିନ୍ତୁ ଶେଳିର ହାତ ବିଜୁଳି ବେଗରେ ଫୁଲ ଦାରରେ ବାଜିଲ ଏବଂ ତାହା ହୋମାଗ୍ନିରେ ପତିତ ହେଲ । )

ଶେଳି--(କଣ୍ଠସ୍ୱର ତା'ର ପରିଷ୍କାର ଓ ଉଚ୍ଚଶ୍ରାବ୍ୟ) ତାକୁ ଏପରି ପରିଷ୍କାର ଓ ଖୋଲ୍‌ଗଳାରେ କହିବାର ଦେଖି ବାପା, ମା, ଭଉଣୀମାନେ, ଭାଇମାନେ, ବନ୍ଧୁବାନ୍ଧବ ଓ ସାଇପଡ଼ଶା ଲୋକେ ଯେମିତି ଚମକି ପଡ଼ିଲେ ଓ ବିସ୍ମିତ ହୋଇଗଲେ ।) ବାପା ! ଆପଣଙ୍କ ଟଙ୍କା ଫେରାଇ ନିଅନ୍ତୁ । ମୁଁ ଏହି ଲୋକକୁ ବିବାହ କରିବିନାହିଁ ।

ରାମଲାଲ୍—(ଚିତ୍କାର କରି କହିଲେ) ଶେଳି ତୁ କ'ଣ ପାଗଳୀ । ତୁ ତୋର ପରିବାରକୁ ଅପମାନିତ କରିବାକୁ ଚାହୁଁଛୁ ? ମା, ଆମର ଇଜ୍ଜତ ରକ୍ଷାକର !

ଶେଳି—ବାପା ! ଆପଣଙ୍କ ଇଜ୍ଜତ ରକ୍ଷାପାଇଁ ମୁଁ ଏହି ବୃଦ୍ଧ ପ୍ରୌଢ଼ ଲୋକକୁ ବିବାହ କରିବା ପାଇଁ ରାଜି ହୋଇଥିଲି । କିନ୍ତୁ ଏପରି ଜଣେ କ୍ଷୁଦ୍ରମନା, ଲୋଭୀ ଓ ଘୃଣ୍ୟ କାପୁରୁଷକୁ ମୋର ସ୍ୱାମୀରୂପେ ଗ୍ରହଣ କରି ପାରିବି ନାହିଁ । ନା, ମୁଁ ପାରିବିନି । ମୁଁ କେବେ ପାରିବିନି-ପାରିବିନି—ନା, ନା, ନା······

ଜଣେ ବୃଦ୍ଧା କହିଲେ—କି ନିର୍ଲଜ୍ଜ ଝିଅଟାଏ । ଆମେ ସବୁ ଭାବିଥିଲୁ ସେ ଏକ ନିରୀହ ମୂକ ଗାଈ ବୋଲି ।

ଶୈଳ—(ଅତ୍ୟନ୍ତ ହିଂସ୍ରକ ଭାବରେ ସେହି ବୃଦ୍ଧାଙ୍କ ଉପରେ ଯେମିତି ଆକ୍ରମଣ କରି କହିବ)—ହଁ ମାଉସୀ, ତୁମେ ସମସ୍ତେ ଭାବିଥିଲ ମୁଁ ଗୋଟେ ମୂକ ନିର୍ବାକ ଶାନ୍ତ ଗାଈ । ସେଥିପାଇଁ ତୁମେ ସବୁ ମୋତେ ଏହି ନିଷ୍ଠୁର ହୃଦୟହୀନ କଂସେଇ ହାତରେ ଟେକି ଦେବାକୁ ବସିଥିଲ । କିନ୍ତୁ ସେହି ଶାନ୍ତ ମୂକ ଗାଈ-ସେହି ନିର୍ବୋଧ ଖମା ହିଁଅଟା କହୁଛି । ଆଜି ଅଧିକ ଶୁଣିବାକୁ ଇଚ୍ଛା କରୁଛ ?

(ଦୋକାନୀ ବିଶମ୍ଭର ନାଥ ତାଙ୍କ ଦଳବଳ ଘେନି ଫେରିଯିବାକୁ ବସିଲେ । ବ୍ୟାଣ୍ଡପାର୍ଟି ଦଳ ବିଚଳିତ ହୋଇ ଚଢ଼ିଥିଲେ । ସେମାନେ ଭାବିଲେ ଉତ୍ସବ ସରିଗଲା । ତେଣୁ ସେ ବିଦାୟକାଳୀନ ସଙ୍ଗୀତ ସ୍ୱର ବ୍ୟାଣ୍ଡ ବାଜା ବଜାଇଲେ । )



[ ରମଲାଲ୍‌ଙ୍କ ପାଦ ଦୁଇଟି ଭୂଇଁରେ ଲାଗି ରହିଥିଲା । ମୁଣ୍ଡ ତଳକୁ ନଇଁ ପଡ଼ିଥିଲା ଦୁଃଖ ଓ ଲଜ୍ଜାରେ । ହୋମାଗ୍ନି ଧୀରେ ଧୀରେ ନଇଁ ଆସୁଥିଲା-ଶେଷକୁ ଲିଭିଗଲା । ସମସ୍ତେ ପ୍ରାପ୍ୟ ଫଳ ପାଇଥିଲେ । ରମଲାଲ୍‌ ଖେଳି ଆସ୍ତେ ବୁଲିପଡ଼ି କହିଲେ ]

ରମଲାଲ୍‌—ହଉ, ଯାହା ଘଟିବାର ଥିଲା, ଘଟିଗଲା । ବର୍ତ୍ତମାନ ତୋ ବିଷୟରେ କ'ଣ କରିବା । ବର୍ତ୍ତମାନ ତୋତେ ଆଜି କେହି ହେଲେ ବିବାହ କରିବେ ନାହିଁ, ତୁ ଯେ ମଙ୍ଗୁଳୀ କନ୍ୟା । ତୋତେ ନେଇ ଆମେ ବର୍ତ୍ତମାନ କ'ଣ କରିବୁ ?

ଖେଳ—ବାବା ! ମୋତେ ସବୁ ଖେଳ ବୋଲି ଡାକନ୍ତି । ମୋ ନାଁ ତ ସୁଲେଖା । କାରଣ ସମସ୍ତେ ମୋ ବିଷୟରେ କଳ୍ପନା କରିଥିଲେ ଯେ ମୁଁ ଗୋଟିଏ ବୋକୀ, ଖଣା ଓ ଅବୋଧ ବାଳିକା । ମୁଁ କିନ୍ତୁ ତାହା ନୁହେ । ମୁଁ ମୋ ନାମର ସାର୍ଥକ କରିଛି । ଆପଣ ମୋ ପାଇଁ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ବାବା ଆପଣଙ୍କର ବୃଦ୍ଧ ବୟସରେ ଆପଣଙ୍କର ତଥା ମୋ' ମାର ସେବା କରିବି । ତା' ଛଡ଼ା ଯେଉଁ ବିଦ୍ୟାଳୟରୁ ମୁଁ ଏତେକଥା, ଏତେ ବିଦ୍ୟା ଶିକ୍ଷା କରି ଉତ୍ତୀର୍ଣ୍ଣ ହୋଇଛି, ସେହି ବିଦ୍ୟାଳୟରେ ମୁଁ ଶିକ୍ଷୟିତ୍ରୀ କାମ କରିବି, ପଢ଼ାଇବି । ମୁଁ ଆପଣଙ୍କ ଉପରେ ବା ଘର ଉପରେ ଆଦୌ ବୋଝ ହେବି ନାହିଁ ।

ବିଦ, ମୁଁ ଯାହା କହୁଛି ତାହା ଠିକ୍ ନୁହେଁ କି ?

ପ୍ର: ଶିକ୍ଷୟିତ୍ରୀ—(ସେ ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷୟିତ୍ରୀ ଗୋଟିଏ ପଟକୁ ଠିଆ ହୋଇ ଚୁପ୍ ଚାପ୍ ଏ ଅଭିନୟ ସବୁ ଦେଖୁଥିଲେ । ତାଙ୍କ ଆଖି ଓ ମୁହଁରୁ ଯେମିତି ଗମ୍ଭୀର ସନ୍ତୋଷର ଆଲୋକ ରେଖା ନିର୍ଗତ ହେଉଥିଲା । ଯେପରିକି ଜଣେ କୃତି ଶିଳ୍ପୀ ତାର କଳା-କାରୁକାର୍ଯ୍ୟରେ ସଫଳତା ଦେଖି ଆତ୍ମସନ୍ତୋଷ ଲାଭକରେ ।) ମା ! ମୋ ଶିକ୍ଷା ଓ ପରିଶ୍ରମର ସଫଳତାରେ ମୁଁ ଆଜ ଗୌରବ ଅନୁଭବ କରୁଛି । ନିଶ୍ଚିତ ଭାବରେ ତୋତେ ଆଦରର ସହିତ ମୋ ବିଦ୍ୟାଳୟକୁ ସ୍ୱାଗତ କରିବ । ତୁ କାଲିଠାରୁ ଯାଇ କାମରେ ଯୋଗଦେବୁ ।

( ଯାବନିକା ପତନ )



K. A. abbos ଙ୍କ 'ଭୋଳା' ଗଳ୍ପର ଅବଲମ୍ବନରେ ଏହି ନାଟିକାଟି ରଚିତ ହୋଇଅଛି ।